# ଶ୍ରୀଦୁର୍ଗା-ଦଧିବାମନଙ୍କ ସଂକ୍ଷିପ୍ତ ଇତିହାସ

ଦୀପ୍ତିରଞ୍ଜନ ଶେଠ





# ଶ୍ରୀଦୁର୍ଗା-ଦଧିବାମନଙ୍କ ସଂକ୍ଷିପ୍ତ ଇତିହାସ

ଲେଖକ

ଶ୍ରୀ ଦୀପ୍ତିରଞ୍ଜନ ଶେଠ

ପ୍ରକାଶକ

ଶ୍ରୀ ଶ୍ରୀ ଦୁର୍ଗା-ଦଧିବାମନ ମନ୍ଦିର ପୂଜା କମିଟି

(ଅର୍ଡ଼ା)

ଜିଲ୍ଲା :– ସମ୍ବଲପୁର

(ଓଡ଼ିଶା)

ପ୍ରଥମ ସଂସ୍କରଣ : ୨୦୧୫

ମୁଦ୍ରଣ :

ଅପ୍ରତିମା ଅଫ୍‌ସେଟ୍ ପ୍ରିଣ୍ଟସ୍

ସୁତାହାଟ, କଟକ-୧, (ଓଡିଶା)



ମୂଲ୍ୟ : ଟ.୧୦/- (ଦଶଟଙ୍କା ମାତ୍ର)

# କୃତଜ୍ଞତା ପ୍ରକାଶ

ଅର୍ଡା ଗ୍ରାମସ୍ଥିତ 'ଶ୍ରୀଦୁର୍ଗା-ଦଧିବାମନ ମହାପ୍ରଭୁ'ଙ୍କ ସଂପର୍କରେ କ୍ଷୁଦ୍ର ପୁସ୍ତିକାଟିଏ ଲେଖିବାପାଇଁ ପ୍ରଥମେ ମତେ ପ୍ରେରଣା ଓ ପ୍ରସ୍ତାବ ଦେଇଛନ୍ତି ସମ୍ବଲପୁରର ପୂର୍ବତନ ସାଂସଦ ଓ ସ୍ତମ୍ଭକାର ଶ୍ରୀଯୁକ୍ତ ଶ୍ରୀବଲ୍ଲଭ ପାଣିଗ୍ରାହୀ ଓ ଶ୍ରୀଯୁକ୍ତ ଗୌରଚନ୍ଦ୍ର ପାଣିଗ୍ରାହୀ (ହଳଦୀ) । ଉଭୟ ମହାଶୟଙ୍କ ସହିତ ଅର୍ଡା ମନ୍ଦିର ସଂକ୍ରାନ୍ତ ଇତିହାସ, ଜନଶ୍ରୁତି ଓ ଲୋକକଥା ପ୍ରସଙ୍ଗକୁ ଆଧାର କରି ଏହା ଲିଖିତ । ପୂର୍ବରୁ ସୁମଧୁର ପଦ୍ୟରେ "ଶ୍ରୀଦୁର୍ଗା-ଦଧିବାମନ ମହାପ୍ରଭୁ''ଙ୍କ ସଂପର୍କରେ ଦୁଇଟି ପୁସ୍ତକ ରଚିତ ହୋଇଛି । ପ୍ରଥମ ପୁସ୍ତକ ଖଣ୍ଡିକ ହେଉଛି "ଶ୍ରୀଦୁର୍ଗା ମାଧବ ଜଣାଣ'' ଓ ଏହାର ଲେଖକ ହେଉଛନ୍ତି ଶ୍ରୀରାମ୍‌ଜୀ ଜେନା । ପୁସ୍ତିକଟି ୧୯୬୫-୬୬ ମସିହାରେ ପ୍ରକାଶିତ ହୋଇଛି । କାରଣ ମୋ ଦ୍ୱାରା ସଂଗ୍ରହ କରାଯାଇଥିବା ପୁସ୍ତକର ମଲାଟ ପୃଷ୍ଠା ନଥିବାରୁ ସେ ସଂପର୍କରେ ବିଶେଷ କିଛି କୁହାଯାଇ ପାରିବ ନାହିଁ । ଦ୍ୱିତୀୟ ପୁସ୍ତକ ଖଣ୍ଡିକ "ଶ୍ରୀଦୁର୍ଗା-ଦଧିବାମନ ଜଣାଣ'' ଓ ଏହାର ଲେଖକ ହେଉଛନ୍ତି ଭକ୍ତକବି ପ୍ରଭାକର ପାଣିଗ୍ରାହୀ । ଏହା ୧୯୯୧ ମସିହାରେ ପ୍ରକାଶିତ । ଏହା ବ୍ୟତୀତ ଅର୍ଡା ମନ୍ଦିର ସଂକ୍ରାନ୍ତ ଇତିହାସ ଆଉ କେହି ଲେଖିଥାଇ ପାରନ୍ତି; ଅସମ୍ଭବ ନୁହେଁ ।

ଏହି ପୁସ୍ତିକାରେ ବ୍ୟବହୃତ ହୋଇଥିବା ଅଳ୍ପ କେତେକ ତଥ୍ୟ, ଉପାଦାନ କଟକସ୍ଥିତ 'ଉତ୍କଳ ସାହିତ୍ୟ ସମାଜ'ର ଉତ୍କଳଗୌରବ ମଧୁସୂଦନ ପାଠାଗାରରୁ ସଂଗୃହୀତ । ସେହିପରି ଏହି ପୁସ୍ତିକା ଖଣ୍ଡିକ ଶୀଘ୍ର ପ୍ରକାଶିତ ହେବାର ଶୁଭକାମନା କରିଛନ୍ତି ଶ୍ରୀ ପ୍ରସନ୍ନ କୁମାର ଦାଶ (ଭୂତପୂର୍ବ ସୁଯୋଗ୍ୟ ହେଡ୍‌ମାଷ୍ଟର୍, ରାଣା ପ୍ରତାପ ହାଇସ୍କୁଲ୍ ବରଗଡ଼), ଶ୍ରୀ ପୁରନ୍ଦର

ପାଣିଗ୍ରାହୀ (ଶରଧାପାଲି), ଶ୍ରୀ ନାରାୟଣ ପାଣିଗ୍ରାହୀ (ଅର୍ଡ଼ା), ଶ୍ରୀ ରମଣୀରଞ୍ଜନ ମାଝି (ଅର୍ଡ଼ା), ଶ୍ରୀ ଗୌରଚନ୍ଦ୍ର ପାଣିଗ୍ରାହୀ (ହଳଦୀ), ଶ୍ରୀ ବିନୋଦ କୁମାର ପଣ୍ଡା (ଛତାବର), ଅଧ୍ୟାପିକା ସୁନନ୍ଦା ପାଣିଗ୍ରାହୀ, ବିଧାୟିକା ଡାକ୍ତର ରାସେଶ୍ୱରୀ ପାଣିଗ୍ରାହୀ, ପଣ୍ଡିତ ନୀଳାମ୍ବର ହୋତା (ସଙ୍ଖଳା), ଶ୍ରୀଯୁକ୍ତ ଶ୍ରୀକର ଧରାଇ (ସଙ୍ଖଳା), ଗବେଷକ ଶ୍ରୀ ଦେବେନ୍ଦ୍ର କୁମାର ଦାଶ, ଡକ୍ଟର୍ ଗୌରାଙ୍ଗ ଚରଣ ଦାଶ, ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ ଏବଂ ଶ୍ରୀ ପଦ୍ମଲୋଚନ ମାଝୀ (ଅର୍ଡ଼ା) । ଏହି ପୁସ୍ତିକା ମୁଦ୍ରଣର ବ୍ୟୟଭାର ବହନ କରିଛନ୍ତି "ଶ୍ରୀ ଶ୍ରୀ ଦୁର୍ଗାଦଧିବାମନ ମନ୍ଦିର" ପୂଜା କମିଟି, (ଅର୍ଡା) । ତେଣୁ ପୁସ୍ତକ ପ୍ରକାଶନର ଶୁଭ ଅବସରରେ ସମସ୍ତଙ୍କୁ ସଭକ୍ତି ନମସ୍କାର କରୁଛି । ଏହି ପୁସ୍ତିକାର ମୁଦ୍ରଣ କାର୍ଯ୍ୟରେ ସାହାଯ୍ୟ କରିଛନ୍ତି କଟକ 'ଅପ୍‌ଟିମା ଅଫ୍‌ସେଟ୍ ପ୍ରିଣ୍ଟର୍ସ'ର ପରିଚାଳକ ଶ୍ରୀ ତପନ କୁମାର ମହାପାତ୍ର । ତାଙ୍କୁ ମଧ୍ୟ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

ଶେଷରେ ପାଠକ-ପାଠିକା, ଗବେଷକ-ଗବେଷିକାଙ୍କୁ ବିଶେଷ ଅନୁରୋଧ ଯେ, ଏହି ପୁସ୍ତିକାରେ କିଛି ତ୍ରୁଟୀ ଥିଲେ, ମତେ ଜଣାଇଲେ ମୁଁ ଉପକୃତ ହେବା ସହିତ ପରବର୍ତ୍ତୀ ସଂସ୍କରଣରେ ତାର ମାର୍ଜନା କରିବି ।

ବାବୁବନ୍ଧ,                                                ଇତି

(ତା ୨-୬-୨୦୧୫)                               ଶ୍ରୀ ଦୀପ୍ତିରଞ୍ଜନ ଶେଠ

# ଶ୍ରୀଦୁର୍ଗା-ଦଧିବାମନଙ୍କ ସଂକ୍ଷିପ୍ତ ଇତିହାସ

ସମ୍ବଲପୁର ସହରଠାରୁ ଦକ୍ଷିଣ ଦିଗକୁ (ସୋନପୁର ଆଡ଼କୁ) ପ୍ରାୟ ବାଇଶି କିଲୋମିଟର ରାସ୍ତା ଅତିକ୍ରମ କଲାପରେ ସାହାସପୁର ଛକ ପଡ଼େ । ସାହାସପୁର ଛକଠାରୁ ପାଞ୍ଚ ଛଅ କିଲୋମିଟର ଦୂର ପଶ୍ଚିମ ଆଡ଼କୁ 'ଅର୍ଡା' ନାମରେ ଏକ କ୍ଷୁଦ୍ର ପଲ୍ଲୀଗ୍ରାମ ଅବସ୍ଥିତ । 'ଅର୍ଡା' ହେଉଛି ଇତିହାସ ପ୍ରସିଦ୍ଧ ଗ୍ରାମ । ଏହି ଅର୍ଡା ଗ୍ରାମର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗୀୟ ମୃତ୍ୟୁଞ୍ଜୟ ପାଣିଗ୍ରାହୀ ଥିଲେ ବୀରସୁରେନ୍ଦ୍ର ସାଏଙ୍କ ଉପଦେଷ୍ଟା । ସମ୍ବଲପୁର ଜିଲ୍ଲା ଧମା ଥାନାନ୍ତର୍ଗତ (୧ । ଗଏଧର ପାଲି, ୨ । ତେନ୍ତୁଲିକୁଣ୍ଡା, ୩ । ଛଟାନ ପାଲି, ୪ । ବାଉଁସେନ୍ ମୁରା, ୫ । ଶରଧାପାଲି, ୬ । ରଢ଼ିଆପାଲି, ୭ । ବରଗାଁ, ୮ । ହଳଦୀ, ୯ । ସଙ୍ଖଳା, ୧୦ । ଅର୍ଡା, ୧୧ । ସାହାସପୁର, ୧୨ । ଜୟଘଣ୍ଟ, ୧୩ । ଖୁଣ୍ଟି, ୧୪ । ଚକୁଳି, ୧୫ । ସାଲେ ସିଂ, ୧୬ । ଦଶପୁର, ୧୭ । ଭାରଦୋଲ୍, ୧୮ । ପୁଟିଆପାଲି, ୧୯ । ଖସୁଆ ପାଲି, ୨୦ । ଲବ୍‌ଡେରା, ୨୧ । ବଟେମୁରା, ୨୨ । ମେଣ୍ଡଲିପାଲି) ବାଇଶଗୋଟି ଗ୍ରାମ ବହୁ ପୁରାତନ କାଳରୁ 'ପଞ୍ଚରାବାହି' ନାମରେ କଥିତ ହୋଇ ଆସୁଅଛି । ଏହାକୁ ସମ୍ବୋଧନରେ କେହି କେହି 'ପଚଁଲାବାହି' ମଧ୍ୟ କହିଥାନ୍ତି । ପଚଁଲାବାହିର ଇଷ୍ଟଦେବତା ହେଉଛନ୍ତି "ଶ୍ରୀ ଶ୍ରୀ ଦୁର୍ଗାଦଧିବାମନ ମହାପ୍ରଭୁ" । ଏହି ଗ୍ରାମର ଅବସ୍ଥିତି ହେଉଛି ମହାନଦୀ କୂଳରେ । ଏହିଠାରେ ସୁପ୍ରସିଦ୍ଧ 'ଦୁର୍ଗା-ଦଧିବାମନ'ଙ୍କ ମନ୍ଦିରଟି ଅବସ୍ଥିତ । ପଶ୍ଚିମ ଓଡ଼ିଶାର ତୀର୍ଥକ୍ଷେତ୍ର ମଧ୍ୟରେ ଏହି ପୀଠର ସ୍ୱତନ୍ତ୍ର ମହିମା କେତେ କାଳରୁ ରହିଛି । ଏହି ମନ୍ଦିରର କୌଣସି ଲିଖିତ ଇତିହାସ ନଥିବାରୁ ସଠିକ୍ ଭାବେ କେବେ ନିର୍ମିତ ହୋଇଛି, ତାହା କହି ହେଉନାହିଁ । ବରଗାଁର ଭକ୍ତକବି ପ୍ରଭାକର ପାଣିଗ୍ରାହୀଙ୍କ ଦ୍ୱାରା ରଚିତ "ଶ୍ରୀ ଦୁର୍ଗା-ଦଧିବାମନ ଜଣାଣ"

(ପ୍ରଥମ ସଂସ୍କରଣ-୧୯୯୧) ଶୀର୍ଷକ ପୁସ୍ତକରୁ ଯାହା ଜଣାପଡ଼େ ମନ୍ଦିରର ଆନୁମାନିକ ପୁରାତନ ସମୟ ହେଉଛି ୫୦୦-୬୦୦ ବର୍ଷ। ଜନଶ୍ରୁତି ଅନୁସାରେ ହଳଦୀ ଗ୍ରାମର ସ୍ୱର୍ଗୀୟ ଗିରିଧାରୀ ପାଣିଗ୍ରାହୀଙ୍କ ପୂର୍ବଜ, ସମ୍ବଲପୁରର ପୂର୍ବତନ ସାଂସଦ ଶ୍ରୀଯୁକ୍ତ ଶ୍ରୀବଲ୍ଲଭ ପାଣିଗ୍ରାହୀଙ୍କ ପୂର୍ବଜ ତଥା ଅର୍ଡା-ହଲ୍‌ଦୀ-ବରଗାଁ-ଦଶପୁର ଆଦି ଚାରିଖଣ୍ଡ ଗ୍ରାମରେ ଏହି ପାଣିଗ୍ରାହୀ ବଂଶର ପରବର୍ତ୍ତୀ ଉତ୍ତରାଧିକାରୀମାନେ ବାସକରି ଆସୁଛନ୍ତି। ଏମାନଙ୍କ ପୂର୍ବପୁରୁଷ ଏହି ମନ୍ଦିରର ଅଗ୍ରପୂଜକ ବୋଲି କିମ୍ବଦନ୍ତୀ ଅଛି।

କିମ୍ବଦନ୍ତୀ କହେ : ସମ୍ବଲପୁର ଜିଲ୍ଲାନ୍ତର୍ଗତ "ଗମ୍ଭାରକଁଟା" ନାମକ ଗ୍ରାମ୍‌ରୁ ଦୁଇଜଣ ବ୍ରାହ୍ମଣ ଯୁବକ (ଉଭୟେ ଭାଇ ଭାଇ) ରଙ୍ଗିଆ ପାଣିଗ୍ରାହୀ ଓ ତ୍ରିଲୋଚନ ପାଣିଗ୍ରାହୀ ନିଜର ଗାଁ ଛାଡ଼ି ଧମା ଥାନାନ୍ତର୍ଗତ ସାହାସପୁର ଅଞ୍ଚଳକୁ ଚାଲି ଆସିଥିଲେ। ରଙ୍ଗିଆ ପାଣିଗ୍ରାହୀ 'ଅର୍ଡ଼ା' ଗ୍ରାମରେ ଓ ତ୍ରିଲୋଚନ ପାଣିଗ୍ରାହୀ "ଦଶ୍‌ପୁର" ଗ୍ରାମରେ ବାସକଲେ। ତ୍ରିଲୋଚନ ପାଣିଗ୍ରାହୀ "ଦଶ୍‌ପୁର"ରେ ବାସ କରୁଥିବା ସମୟରେ ତାଙ୍କ ପାଖରେ ଗୋଟିଏ ଦଧିବାମନ ମୂର୍ତ୍ତିଥିଲେ ଓ ସେହି ମୂର୍ତ୍ତିକୁ ସେ ନିଜର ଇଷ୍ଟଦେବତା ରୂପରେ ପୂଜା କରୁଥିଲେ। ତ୍ରିଲୋଚନ ପାଣିଗ୍ରାହୀଙ୍କ ପୁଅ କିମ୍ବା ଜଣେ ନାତି (?) ଦୁଇଟି ସ୍ତ୍ରୀ ବିବାହ କରିଥିଲେ। ପ୍ରଥମା ସ୍ତ୍ରୀଙ୍କ ଗର୍ଭରୁ ଗୋଟିଏ ମାତ୍ର ପୁଅ ଓ ଦ୍ୱିତୀୟା ସ୍ତ୍ରୀଙ୍କ ପକ୍ଷରୁ ଦୁଇଟି ପୁଅ ଓ ତିନୋଟି କନ୍ୟା ଜାତ ହୋଇଥିଲେ। ପ୍ରଥମା ସ୍ତ୍ରୀଙ୍କ ପୁଅଟି ସେତେବେଳକୁ ବଡ଼ ହୋଇଯାଇଥିଲେ। ସଂପତ୍ତି ଲୋଭରେ ସେ ଦ୍ୱିତୀୟା ମାତାଙ୍କୁ ସର୍ବଦା ହଇରାଣ କରୁଥିଲେ। ପ୍ରଥମା ସ୍ତ୍ରୀ ତ ଆଉ ଇହଧାମରେ ନଥିଲେ। ଦ୍ୱିତୀୟା ସ୍ତ୍ରୀ ଯୁବତୀ ଥିଲେ। ତାଙ୍କର ପାଞ୍ଚଟି ପୁତ୍ରକନ୍ୟାଙ୍କ ମଧ୍ୟରୁ ଦୁଇଟି ପୁତ୍ରଙ୍କର ସାମାନ୍ୟ ଯୁବକ ଅବସ୍ଥା ଓ ତିନି କନ୍ୟାଙ୍କର ସେତେବେଳକୁ ଶୈଶବାବସ୍ଥା ଥିଲା। ସେହି ସମୟରେ ତ୍ରିଲୋଚନ ପାଣିଗ୍ରାହୀ, ତାଙ୍କର ପୁତ୍ର କିମ୍ବା ନାତି ଆଉ କେହି ଜୀବିତ ନଥିଲେ। ଫଳରେ ବଡ଼ପୁଅର ଅତ୍ୟାଚାରରେ ଅତିଷ୍ଠ ହୋଇ ଦ୍ୱିତୀୟା ଯୁବତୀ ସ୍ତ୍ରୀ ନିଜର ପାଞ୍ଚଟି ସନ୍ତାନ ସହିତ 'ବରଗାଁ'କୁ ଚାଲି ଆସିଥିଲେ।

ସପରିବାର 'ବରଗାଁ' ଗ୍ରାମକୁ ତ ଚାଲି ଆସିଲେ, ମାତ୍ର ଖାଇବା ପାଇଁ ତାଙ୍କ ପାଖରେ କୌଣସି ଖାଦ୍ୟ ପଦାର୍ଥ ନଥିଲା । 'ବରଗାଁ' ଗ୍ରାମର କେତେଜଣ ଭଦ୍ରଲୋକଙ୍କ ସହାୟତାରେ କିଛି ଦିନ ରହିବା ଓ ଖାଦ୍ୟପେୟର ବ୍ୟବସ୍ଥା କରାଯାଇଥିଲା । ଦ୍ୱିତୀୟା ଯୁବତୀ ସ୍ତ୍ରୀ ଓ ତାଙ୍କର ପାଞ୍ଚଜଣ ସନ୍ତାନଙ୍କ ଭବିଷ୍ୟତ ଚିନ୍ତା ସହିତ ପୂର୍ବୋକ୍ତ ଅତ୍ୟାଚାରିତ ସମସ୍ତ ଘଟଣାବଳୀ ଅବଗତ ହୋଇ ବରଗାଁର ତତ୍‌କାଳୀନ କୁଳିତା ଗୌନ୍ତିଆ ମହାଶୟ ଏହି ପରିବାରକୁ ୨୫ ଡିସ୍‌ମିଲ୍ ଜମି ଦାନ କରିଥିଲେ । ଦ୍ୱିତୀୟା ସ୍ତ୍ରୀଙ୍କର ଯେଉଁ ଦୁଇଜଣ ପୁତ୍ର ସନ୍ତାନ ଥିଲେ ସେମାନଙ୍କ ମଧ୍ୟରେ ଜଣେ ହେଉଛନ୍ତି ଶ୍ରୀ ମନବୋଧ ପାଣିଗ୍ରାହୀ (ଗୌରଚନ୍ଦ୍ର ପାଣିଗ୍ରାହୀଙ୍କ ପୂର୍ବଜ) ଓ ଅନ୍ୟଜଣକ ହେଲେ ଶ୍ରୀ ଜଗନ୍ନାଥ ପାଣିଗ୍ରାହୀ (ସାଂସଦ ଶ୍ରୀ ବଲ୍ଲଭ ପାଣିଗ୍ରାହୀଙ୍କ ପୂର୍ବଜ) । ବରଗାଁର ଗୌନ୍ତିଆ ମହାଶୟଙ୍କଠାରୁ ପ୍ରାପ୍ତ ହୋଇଥିବା ସେହି ୨୫ ଡିସ୍‌ମିଲ୍ ଜମିରେ ଉଭୟ ଭାଇ ଧାନଚାଷ କରି ଶସ୍ୟ ଉତ୍ପାଦନ କରିଥିଲେ । ଏଭଳି ଚାଷକାର୍ଯ୍ୟରେ ଉଭୟ ଭାଇ ନିୟୋଜିତ ଥାଇ ବହୁବର୍ଷ ପରେ 'ହଳଦୀ' ଓ 'ଛଚାନପାଲି' ଗ୍ରାମରେ ଜମି କିଣି ବିପୁଳ ଭୂମି ସଂପତ୍ତିର ଅଧିକାରୀ ହୋଇପାରିଥିଲେ । ପୂର୍ବରୁ ଯେଉଁ ଦଧିବାମନ ମୂର୍ତ୍ତି ଥିଲେ, ତାହାକୁ ଦଶପୁରଗ୍ରାମର ଗୁଡ଼ିବନ୍ଧଠାରେ ସ୍ଥାପନା କରି ନିଜର ଇଷ୍ଟଦେବତା ରୂପରେ ପୂଜା କରୁଥିଲେ ।

ବର୍ତ୍ତମାନ ଯେଉଁ ସ୍ଥାନରେ "ଦୁର୍ଗା-ଦଧିବାମନ"ଙ୍କ ମନ୍ଦିର ଅଛି ପୂର୍ବେ ସେଠାରେ କେବଳ ବନଦୁର୍ଗା ବାସ କରୁଥିଲେ । ବନଦୁର୍ଗାଙ୍କୁ ଅର୍ଚ୍ଚା ତଥା ଆଖପାଖ ଗ୍ରାମର ଲୋକମାନେ ପୂଜାର୍ଚ୍ଚନା କରିବା ସହିତ ପଶୁବଳି ଦେବାର ମଧ୍ୟ ଜନଶ୍ରୁତି ରହିଛି । ବଳିପ୍ରଥାକୁ ମା'ଦୁର୍ଗା ଆଉ ସହ୍ୟ କରିପାରିଲେ ନାହିଁ । ସେହି ସ୍ଥାନରେ କିଭଳି ଶାନ୍ତିର ପ୍ରତିଷ୍ଠା ହେବ ମା'ଦୁର୍ଗା ସେହି କଥା ହିଁ ଚିନ୍ତା କଲେ । ତ୍ରିଲୋଚନ ପାଣିଗ୍ରାହୀଙ୍କ ଦ୍ୱାରା ଦଶପୁରଗ୍ରାମର ଗୁଡ଼ିବନ୍ଧଠାରେ ଯେଉଁ ଦଧିବାମନ ମୂର୍ତ୍ତି ପୂଜା ପାଉଥିଲେ, ସେଠାରେ ଦୁର୍ଗାମାତା ଉପସ୍ଥିତ ହୋଇ ପ୍ରଭୁ ଶ୍ରୀ ଶ୍ରୀ ଦଧିବାମନଙ୍କୁ ସମସ୍ତ ଘଟଣା ଜଣାଇଲେ । ଶ୍ରୀ ଦଧିବାମନ

ପ୍ରଭୁ ବଳିପ୍ରଥା ବିଷୟ ଅବଗତ ହୋଇ ଅତ୍ୟନ୍ତ ଦୁଃଖିତ ହେଲେ । ମାଆ ଦୁର୍ଗା ଶ୍ରୀଶ୍ରୀ ଦଧିବାମନ ମହାପ୍ରଭୁଙ୍କୁ କହିଲେ : "ପ୍ରଭୁ ଦଧିବାମନ ! ଆପଣ ଯଦି ମୋ' ସାଥୀରେ ସେଠାରେ ଏକତ୍ର ବିରାଜମାନ କରନ୍ତେ ତେବେ ବଳିପ୍ରଥା ସଂପୂର୍ଣ୍ଣ ବନ୍ଦ ହୁଅନ୍ତା"– ଏହା ଶୁଣି ଦଧିବାମନ ପ୍ରଭୁ କହିଲେ, "ଠିକ୍ ଅଛି । ଆଗେ ମୋର ଭକ୍ତଙ୍କୁ ପଚାରେ ସେ ଯଦି ସମ୍ମତ ହେବେ ତେବେ ତୁମ ସଙ୍ଗରେ ସେଠାରେ ଏକତ୍ର ବାସ କରିବି ।" ସେହି ରାତିରେ ଶ୍ରୀଶ୍ରୀ ଦଧିବାମନ ମହାପ୍ରଭୁ ତାଙ୍କର ପ୍ରିୟ ଭକ୍ତଙ୍କୁ ସ୍ୱପ୍ନାଦେଶ ଦେଇ କହିଲେ : "ଭକ୍ତ ବତ୍ସଳ ! ମାଆ ଦୁର୍ଗାଙ୍କ ଅନୁରୋଧ ହୋଇଛି ତୁମେ ଯଦି ସମ୍ମତ ହେବ ତେବେ ମୁଁ ଯାଇ ଦୁର୍ଗାମାତାଙ୍କ ସଙ୍ଗେ ଅର୍ଡା ମନ୍ଦିରରେ ଏକତ୍ର ବାସ କରିବି ।" ଭକ୍ତ ବତ୍ସଳ ଶ୍ରୀ ପାଣିଗ୍ରାହୀ କହିଲେ "ପ୍ରଭୁ ! ମାଆ ଦୁର୍ଗାଙ୍କର ଯେତେବେଳେ ଆଦେଶ ହୋଇଛି ମୁଁ ବା ଆପଣଙ୍କୁ ଆଉ ରଖିପାରିବି ? ଆପଣ ଯେଉଁଠାରେ ଥିଲେ ମଧ୍ୟ ଆପଣଙ୍କ ଶୁଭଦୃଷ୍ଟି ଆମ ଉପରେ ଅଛି ।"– ଭକ୍ତଙ୍କ ମୁଖରୁ ଏଭଳି ଭକ୍ତିଭାବ ଶୁଣି ଦଧିବାମନ ମହାପ୍ରଭୁ ତଥାସ୍ତୁ କହି ଅର୍ନ୍ତଧ୍ୟାନ ହୋଇଗଲେ । ତା'ପରଦିନ ବ୍ରାହ୍ମଣ ପୁରୋହିତଙ୍କୁ ଡକାଇ ଲଗ୍ନ ନିର୍ଣ୍ଣୟ କରାଗଲା ଓ ସେହି ତିଥି ଅନୁସାରେ ଦଶପୁର ଗୁଡ଼ିବନ୍ଧରୁ ଶ୍ରୀ ଦଧିବାମନ ମହାପ୍ରଭୁଙ୍କ ମୂର୍ତ୍ତିକୁ ପୂଜାର୍ଚ୍ଚନା ପୂର୍ବକ ଗିନି-ମୃଦଙ୍ଗ-ନାମ ସଂକୀର୍ତ୍ତନ ସହିତ ଦଶପୁର ଗ୍ରାମବାସୀ-ଭକ୍ତବୃନ୍ଦ ଅତି ଆନନ୍ଦ ମନରେ ଅର୍ଡା ମନ୍ଦିରରେ ଦଧିବାମନ ମହାପ୍ରଭୁଙ୍କୁ ମାଆ ଦୁର୍ଗାଙ୍କ ସହିତ ଏକତ୍ର ସ୍ଥାପନ କରାଇଥିଲେ । ସେହିଦିନଠାରୁ ବଳିପ୍ରଥା ସଂପୂର୍ଣ୍ଣ ବନ୍ଦ ହେବା ସହିତ ଏହା "ଦୁର୍ଗା ଦଧିବାମନ" ଏବଂ "ଦଧିବାମନ ଦୁର୍ଗା" ଏହି ଉଭୟ ନାମରେ ବିଖ୍ୟାତ୍ ହୋଇ ପୂଜା ପାଇ ଆସୁଛନ୍ତି । ଏଠାରେ ବ୍ରାହ୍ମଣ ପୂଜକ ନିଯୁକ୍ତ ଅଛନ୍ତି । ଏହି ମନ୍ଦିରରେ ପୂଜା ପାଉଥିବା "ଦୁର୍ଗା ଦଧିବାମନ" ପ୍ରତ୍ୟକ୍ଷ ଦେବତା ଅଟନ୍ତି । ଯେଉଁ ଭକ୍ତ ତାଙ୍କୁ ଦର୍ଶନ କରିଛି ତାର ଜୀବନ ଧନ୍ୟ ହୋଇଛି । "ଦୁର୍ଗା ଦଧିବାମନ"ଙ୍କ ସହିତ ନୂତନ

ଭାବେ ନିର୍ମିତ ହୋଇଥିବା ଶ୍ରୀ ହନୁମାନଙ୍କର ବିଗ୍ରହ ମଧ୍ୟ ପ୍ରତିଦିନ ପୂଜାପାଉଛନ୍ତି ।

ଆହୁରି ଗୋଟିଏ କିମ୍ବଦନ୍ତୀ ଅଛି–ପୂର୍ବକାଳରେ କୌଣସି ଗ୍ରାମ ଗ୍ରାମ ମଧ୍ୟରେ ଅଥବା ଘରେ ଘରେ କୌଣସି ବିଷୟ ଉପରେ କଳିଗୋଳ କିମ୍ବା ଆଉ କୌଣସି ଅପ୍ରୀତିକର କାର୍ଯ୍ୟ ସୃଷ୍ଟି ହେଲେ ସେହି ସମସ୍ତ ସମସ୍ୟାର ସମାଧାନ, ପୂର୍ଣ୍ଣ ମୀମାଂସା କରିବାପାଇଁ ଏହି "ଦୁର୍ଗା ଦଧିବାମନ"ଙ୍କ ମନ୍ଦିର ପ୍ରାଙ୍ଗଣରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ସଭାର ଆୟୋଜନ କରାଯାଉଥିଲା । ଏଠାରେ ଯେଉଁମାନେ ନ୍ୟାୟ ବିଚାର କରୁଥିଲେ ସେମାନଙ୍କୁ "ପଣ୍ଡା ପାଣିଗ୍ରାହୀ" କୁହାଯାଉଥିଲା । ଏହି "ପଣ୍ଡା-ପାଣିଗ୍ରାହୀ" ଉଭୟ ପକ୍ଷକୁ ରଖି ଯଥାର୍ଥ ବିଚାର କରୁଥିଲେ ଓ ସର୍ବସମ୍ମତି କ୍ରମେ ତାହା ଗୃହୀତ ହେଉଥିଲା । ଏହି "ପଣ୍ଡା ପାଣିଗ୍ରାହୀ" ପ୍ରଥାରେ ସ୍ୱର୍ଗୀୟ ଶଙ୍କର ପଣ୍ଡା (ନିବାସୀ-ସଙ୍ଖଳା) ଓ ସ୍ୱର୍ଗୀୟ ଶତ୍ରୁଘ୍ନ ପାଣିଗ୍ରାହୀ (ନିବାସୀ-ଅର୍ଡା)ଙ୍କ ବହୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା । ବର୍ତ୍ତମାନ କିନ୍ତୁ ଏହି "ପଣ୍ଡା ପାଣିଗ୍ରାହୀ" ପ୍ରଥା ଆଉ ନାହିଁ । "ଅର୍ଡା ଦଧିବାମନ ଦୁର୍ଗା ମନ୍ଦିର''ର ଉନ୍ନତିକଳ୍ପେ ଏହି ଅଞ୍ଚଳର ସମସ୍ତ ଜନତାଙ୍କ ସାଧୁ ଉଦ୍ୟମ ବିନିଯୋଗ ହୋଇଛି । ସର୍ବୋପରି ୰ କେଶବ ଚନ୍ଦ୍ର ହୋତା, ୰ ବାସୁଦେବ ହୋତା (କାନ୍ଦୁରୁ ହୋତା), ୰ ନୀଳକଣ୍ଠ ମାଝୀ, ୰ ପୁରନ୍ଦର ମାଝୀ ଏବଂ ୰ ଗୋକୁଳାନନ୍ଦ ପଣ୍ଡା (ରଢ଼ିଆପାଲି) ପ୍ରଭୃତିଙ୍କର ସଦ୍ ଉଦ୍ୟମ ଓ ମୂଲ୍ୟବାନ୍ ପରାମର୍ଶ ମଧ୍ୟ ଚିରକାଳ ସ୍ମରଣୀୟ ।

ହୁମାରେ ଶ୍ରୀ ବିମଳେଶ୍ୱର ମହାଦେବ, ସମ୍ବଲପୁରରେ ମାଆ ସମଲେଶ୍ୱରୀ, ଚିପିଲିମାରେ ମାଆ ଘଣ୍ଟେଶ୍ୱରୀ ସହିତ ଅର୍ଡାରେ ଶ୍ରୀଦୁର୍ଗା-ଦଧିବାମନ ଏକତ୍ର ପ୍ରତିଦିନ ପୂଜା ପାଉଛନ୍ତି । ପୂର୍ବକାଳରେ ଅର୍ଡା ଗ୍ରାମ ସନ୍ନିକଟ ହଳଦୀ, ବଉଁସରା, ସାହାସପୁର ଆଦି କେତେକ ଗ୍ରାମରେ 'ଶ୍ରୀ ଗିରି ଗୋବର୍ଦ୍ଧନ ପୂଜା' ଅନୁଷ୍ଠିତ ହେଉଥିଲା । ଏହି ମେଳାରେ ଆଖପାଖ ଅଞ୍ଚଳରୁ ବହୁଲୋକ ସମାଗମ ହେଉଥିଲେ । 'ଶ୍ରୀ ଗିରି ଗୋବର୍ଦ୍ଧନ ପୂଜା' ସଂପର୍କରେ ସମ୍ବଲପୁରରୁ

ପ୍ରକାଶିତ ସାପ୍ତାହିକ ସମ୍ବାଦପତ୍ର "ଉତ୍କଳ ସେବକ" ଲେଖିଥିଲା : "ସମ୍ବଲପୁର ଜିଲ୍ଲା ଅନ୍ତର୍ଗତ ହଳଦୀଗ୍ରାମରେ ଗତ ସୋମବାର ଦିନ ପୂର୍ବବର୍ଷ ପରି ଗୋବର୍ଦ୍ଧନ ପୂଜା ମହା-ସମାରୋହରେ ସମ୍ପନ୍ନ ହୋଇଯାଇଅଛି । ଆଉ ବଉଁସରା ଗ୍ରାମରେ ଏବର୍ଷ ଗୋବର୍ଦ୍ଧନ ପୂଜା ନୂତନ ହୋଇଅଛି ।" (ଉତ୍କଳସେବକ ୨୩ : ତା ୨୨.୧୦. ୧୯୧୪) । ଏକଦା 'ସାହାସପୁର' ଗ୍ରାମ ଏ ଅଞ୍ଚଳର ଗୋଟିଏ ବିଶିଷ୍ଟ ଗ୍ରାମ ରୂପେ ଖ୍ୟାତିଲାଭ କରିଥିଲା । ବର୍ଷର ଅଧିକାଂଶ ସମୟ ଭାଗବତ ପାରାୟଣ, ଗୀତାପାଠ ସହିତ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇ ସେତେବେଳେ ଗୋଟିଏ ମଧୁମୟ ପରିବେଶ ସୃଷ୍ଟି କରିପାରିଥିଲା । ସାହାସପୁର ଗ୍ରାମର ପ୍ରଖ୍ୟାତି ସଂପର୍କରେ "ଉତ୍କଳସେବକ" ଘୋଷଣା କରି ଲେଖିଥିଲା :

"ଗତ ଚୈତ୍ର କୃଷ୍ଣ ଅଷ୍ଟମୀ, ନବମୀ ଓ ଦଶମୀ ଦିନ ତ୍ରୟରେ ଭାଗବତ ସଭାମାନ ହୋଇଯାଇଛି । ଗୋସ୍ୱାମୀ ଜୟରାମ ଦାସ ତିନିଦିନର ସଭାପତିର କାର୍ଯ୍ୟ ସୁନ୍ଦର, ସରସ ଭାବରେ ଚଳାଇଥିଲେ । ଏ ତରଙ୍ଗର ଅନେକ ଭାଗବତ ପ୍ରେମିକ ଲୋକ ଉପସ୍ଥିତ ହୋଇ ସଭାର ମହତ୍ତ୍ୱ ଏବଂ ଗୁରୁତ୍ୱ ବହନ କରିଥିଲେ । ଏମାନଙ୍କ ଭିତରୁ ପଣ୍ଡିତ ଘନଶ୍ୟାମ ପାଣିଗ୍ରାହୀ, ବାବାଜି ରଘୁବୀର ଦାସ, ପଣ୍ଡିତ ବନମାଳୀ ପାଢ଼ୀଙ୍କ ନାମ ଉଲ୍ଲେଖଯୋଗ୍ୟ । ପ୍ରାୟ ପାଞ୍ଚଶତ ଲୋକଙ୍କ ତିନିଦିନର ଖାଦ୍ୟପାନର ବନ୍ଦୋବସ୍ତ ହୋଇଥିଲା । ସାହାସପୁର ଗ୍ରାମବାସୀ ବିଶେଷ କରି ନାରାୟଣ ଗୌନ୍ତିଆ, ବଳରାମ ପାନ୍ହରା, ବାଳମୁକୁନ୍ଦ ମେଲ୍ଲି, ଘନଶ୍ୟାମ ମାଷ୍ଟର୍, ମାଗୁଆଡ଼ୀ ମାନଧାତା, କବିରାଜ ବାବୁ ମୃତ୍ୟୁଞ୍ଜୟ ବେହେରା ପ୍ରଭୃତିଙ୍କ ଅକ୍ଳାନ୍ତ ପରିଶ୍ରମ ସମସ୍ତଙ୍କୁ ମୁଗ୍ଧ କରି ପକାଇଥିଲା । ଭାଗବତର ଗୁଢ଼ତତ୍ତ୍ୱ ଗୋସ୍ୱାମୀ ଜୟରାମ ଦାଶ ପ୍ରାଞ୍ଜଳ ଭାବରେ ବୁଝାଇଥିଲେ । ଭାଗବତ ପ୍ରେମିକ ସ୍ୱର୍ଗୀୟ ପଣ୍ଡିତ ନୀଳମଣି ଗୌନ୍ତିଆଙ୍କ ମୃତ୍ୟୁରେ ଶୋକ ପ୍ରସ୍ତାବ ଗୃହୀତ ହୋଇଥିଲା । ଭାଗବତର ଚର୍ଚ୍ଚାରେ ଗଞ୍ଜିକା

(ଗଞ୍ଜେଇ) ସେବନ ନିଷେଧ ପ୍ରସ୍ତାବ ଗୃହୀତ ହୋଇଥିଲା ।"
(ଉତ୍କଳ ସେବକ – ୧୭।୩୯ : ତା. ୨.୩.୧୯୩୧)

୧୯୬୨ ମସିହାରେ "ଅଷ୍ଟ ଗ୍ରହକୂଟ ଯଜ୍ଞ" ବା "ବିଶ୍ୱଶାନ୍ତି ହରିଯଜ୍ଞ" ପାଳିତ ହୋଇଥିଲା । ଏହା ସପ୍ତାହ ବ୍ୟାପୀ ଅର୍ଥାତ୍ ତା. ୨୯.୧.୧୯୬୨ ରୁ ତା ୪.୨.୧୯୬୨ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥିଲା । ଏହି ଯଜ୍ଞରେ ଯେଉଁମାନେ ବିଭିନ୍ନ କାର୍ଯ୍ୟର ଦାୟିତ୍ୱ ନିର୍ବାହ କରିଥିଲେ, ସେମାନେ ହେଲେ :

୧ । ସଭାପତି – ଶ୍ରୀ ଗୋକୁଳାନନ୍ଦ ପଣ୍ଡା (ରଢ଼ିଆ ପାଲି)
୨ । କର୍ତ୍ତା – ଶ୍ରୀ ମୋହନ ପଣ୍ଡା (ସଙ୍ଖଳା)
୩ । ମୁଖ୍ୟ ପୁରୋହିତ – ଶ୍ରୀ ବିନାୟକ ହୋତା (ହଲ୍‌ଦୀ)
୪ । ଭଣ୍ଡାରଘର ରକ୍ଷକ – ଶ୍ରୀ କେଶବଚନ୍ଦ୍ର ହୋତା
ଶ୍ରୀ ଗଙ୍ଗାଧର ହୋତା (?)
୫ । ଘୃତଦାନ କରିଥିଲେ – ଶ୍ରୀ ହରିବନ୍ଧୁ ମହାପାତ୍ର (କରଞ୍ଜୋଲା)
୬ । କବିରାଜ ଔଷଧ ଦାନ କରିଥିଲେ– ଶ୍ରୀ ନାରାୟଣଚନ୍ଦ୍ର ପଣ୍ଡା (ସାହାସପୁର)

ଏହା ବାହାରେ ବହୁ ଭଦ୍ରଲୋକ ବିଭିନ୍ନ ଦାୟିତ୍ୱ ନିର୍ବାହ କରିଥିଲେ । "ଅଷ୍ଟ ଗ୍ରହକୂଟ" ଯଜ୍ଞରେ ଗୀତାପାଠ ସହିତ ଭାଗବତ ପାରାୟଣ କାର୍ଯ୍ୟକ୍ରମ ଦୀର୍ଘ ସାତଦିନଧରି ଅନୁଷ୍ଠିତ ହୋଇଥିଲା । ସାତଦିନ ପାଇଁ ସାତଜଣ ନୂତନ ଗାୟକ ନିଯୁକ୍ତ ହୋଇଥିଲେ । ଯେଉଁମାନେ ଏହି ମନ୍ଦିର ପ୍ରାଙ୍ଗଣରେ ଶ୍ରୀମଦ୍ ଭାଗବତ ମହାପୁରାଣ ପାଠ କରିଥିଲେ ସେମାନେ ହେଲେ :

୧ । ପ୍ରଥମ ଦିବସ – ଶ୍ରୀ ଗୋକୁଳ ଚନ୍ଦ୍ର ପାଣିଗ୍ରାହୀ – (ଅର୍ଡା)
୨ । ଦ୍ୱିତୀୟ ଦିବସ – ଶ୍ରୀ ବାସୁଦେବ ହୋତା – (ଅର୍ଡା)
୩ । ତୃତୀୟ ଦିବସ – ଶ୍ରୀ ଶ୍ୟାମସୁନ୍ଦର ପଣ୍ଡା – (ରଢ଼ିଆ ପାଲି)
୪ । ଚତୁର୍ଥ ଦିବସ – ଶ୍ରୀ ଘନଶ୍ୟାମ ପଣ୍ଡା – (ସଙ୍ଖଳା)
୫ । ପଞ୍ଚମ ଦିବସ – ଶ୍ରୀ ଅଭିରାମ ପାଣିଗ୍ରାହୀ – (ଅର୍ଡା) .

୬ । ଷଷ୍ଠ ଦିବସ – ଶ୍ରୀ ଉଗ୍ରସେନ ପଣ୍ଡା – (ଚିପିଲିମା)
୭ । ସପ୍ତମ ଦିବସ – ଶ୍ରୀ ହରେକୃଷ୍ଣ ପଣ୍ଡା – (କପାଶିରା)

ଏହି ମହୋତ୍ସବରେ ଅନେକ ବେଦଜ୍ଞ ବ୍ରାହ୍ମଣ ଯୋଗଦାନ କରି ଯଜ୍ଞକାର୍ଯ୍ୟ ସର୍ବଶୁଭରେ ସଂପନ୍ନ କରିଥିଲେ । ସର୍ବୋପରି ବହୁବ୍ୟକ୍ତି ଆର୍ଥିକ ସାହାଯ୍ୟ କରିଥିଲେ । ସେତେବେଳେ ମନ୍ଦିର୍ କମିଟୀ ପକ୍ଷରୁ ଚାନ୍ଦାର ଏକ ତାଲିକା ମଧ୍ୟ ପ୍ରସ୍ତୁତ କରାଯାଇଥିଲା । ଏହି ଯଜ୍ଞରେ ସମ୍ବଲପୁରର କୃତୀସନ୍ତାନ କର୍ମବୀର ଶ୍ରୀଯୁକ୍ତ ବ୍ରଜମୋହନ ପଣ୍ଡା ବି.ଏ. ମହାଶୟ ଯୋଗଦାନ କରିଥିଲେ ଓ ଆର୍ଥିକ ସାହାଯ୍ୟ ଯୋଗାଇ ଦେଇଥିଲେ । ତା'ପରେ ଯେତେଦୂର ଜଣାପଡ଼େ ୧୯୬୩ ମସିହାରୁ ଏଠାରେ ଭାଦ୍ରବ ମାସ (ଶୁକ୍ଳପକ୍ଷ ନବମୀରୁ ପୂର୍ଣ୍ଣିମା)ରେ ଶ୍ରୀମଦ୍ ଭାଗବତ ସପ୍ତାହ ପାରାୟଣ ଓ ମାର୍ଗଶୀର ମାସ ଶୁକ୍ଳ ଏକାଦଶୀ ତିଥିରେ ଗୀତା ପାଠ କାର୍ଯ୍ୟକ୍ରମ ଆରମ୍ଭହୋଇ ଏପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭବରେଁ ଚଳି ଆସୁଛି । ୧୯୯୦ ମସିହାରେ ପୁଣି ନୂତନ କରି ଶ୍ରୀ ଶ୍ରୀ ଦଧିବାମନଙ୍କ ନବ କଳେବର ଯଜ୍ଞ ଅନୁଷ୍ଠିତ ହୋଇଥିଲା । ସମ୍ବଲପୁର ଗୋପାଳଜୀ ମଠର ତତ୍କାଳୀନ ମହନ୍ତ ଶ୍ରୀ ହୃଷୀକେଶ ଦାସ ଶ୍ରୀ ଜଗନ୍ନାଥଙ୍କ ନବକଳେବରରେ ଦାରୁବ୍ରହ୍ମ ପ୍ରବେଶ କରାଇ ଥିଲେ । ଏହି ଯଜ୍ଞ ତା.୩୧.୧.୧୯୯୦ରୁ ଆରମ୍ଭ ହୋଇ ତା.୨.୨.୧୯୯୦ ପର୍ଯ୍ୟନ୍ତ ତିନି ଦିନ (ମାଘମାସ ଶୁକ୍ଳପକ୍ଷ ପଞ୍ଚମୀ, ଷଷ୍ଠୀ, ସପ୍ତମୀ) ଧରି ଅନୁଷ୍ଠିତ ହୋଇଥିଲା । ଏହା ବ୍ୟତୀତ ଏହି ଅର୍ଡା ମନ୍ଦିରଠାରେ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଯଜ୍ଞ ସବୁ ଅନୁଷ୍ଠିତ ହୋଇଥିଲା । ସେଗୁଡ଼ିକ ମଧରେ ମୁଖ୍ୟ ଯଜ୍ଞଗୁଡ଼ିକ ହେଉଛି :

୧ । ଛପନ ପ୍ରହରୀ ନାମଯଜ୍ଞ - ୨୦୦୨

୨ । ଚଣ୍ଡୀ ଯଜ୍ଞ - ୨୦୦୫

୩ । ଅଷ୍ଟାଦଶ ପୁରାଣ ଯଜ୍ଞ - ୨୦୦୬, (କର୍ତ୍ତା- ଶ୍ରୀ ଅର୍ଜୁନ ରଞ୍ଜନ ପଣ୍ଡା, ପଧାନପଡା, ସମ୍ବଲପୁର)

୪ । ଅଷ୍ଟାଦଶ ପୁରାଣ ଯଜ୍ଞ - ୨୦୦୭,(କର୍ତ୍ତା- ବିଜୟ ଭାଇ,
କ୍ଷେତରାଜପୁର, ସମ୍ବଲପୁର)

୫ । ଅଷ୍ଟାଦଶ ପୁରାଣ ଯଜ୍ଞ - ୨୦୦୮, (କର୍ତ୍ତା- ଜନେଶ୍ୱର ପାଣିଗ୍ରାହୀ,
ଛତାବର, ସମ୍ବଲପୁର)

କର୍ତ୍ତା- ଡାକ୍ତର ସୁବର୍ଣ୍ଣ ଚନ୍ଦ୍ର ପଣ୍ଡା,

୬ । ଅଷ୍ଟାଦଶ ପୁରାଣ ଯଜ୍ଞ- ୨୦୦୯, (କର୍ତ୍ତା- ପୀତବାସ ବିଶି, (ଅର୍ଡା)
ଧନୁପାଲି, ସମ୍ବଲପୁର)

୭ । ଶତଚଣ୍ଡୀ ବିଶ୍ୱଶାନ୍ତି ଯଜ୍ଞ - ୨୦୦୯

୮ । ଅଷ୍ଟାଦଶ ପୁରାଣ ଯଜ୍ଞ - ୨୦୧୦ (କର୍ତ୍ତା- ଶେଷଦେବ ବେହେରା,
(କୁଦ୍‌ମହଦା)
ଗୋପାଳମାଲ, ସମ୍ବଲପୁର ।

୯ । ଅଷ୍ଟାଦଶ ପୁରାଣ ଯଜ୍ଞ - ୨୦୧୩, (କର୍ତ୍ତା- ଦେବାର୍ଚ୍ଚନ ପଣ୍ଡା,
ହଳଦୀ, ସମ୍ବଲପୁର)

୧୦ । ଅଷ୍ଟାଦଶ ପୁରାଣ ଯଜ୍ଞ- ୨୦୧୪, (କର୍ତ୍ତା- ଶ୍ରୀ ଅର୍ଜୁନ ରଞ୍ଜନ ପଣ୍ଡା,
ପଧାନପଡା, ସମ୍ବଲପୁର)

ଏହି ବଂଶର ସ୍ୱର୍ଗୀୟ ନୃସିଂହ ପାଣିଗ୍ରାହୀ (ସାଂସଦ ଶ୍ରୀବଲ୍ଲଭ ପାଣିଗ୍ରାହୀଙ୍କ ଧର୍ମପିତା) ଥିଲେ ଜଣେ ଉଦାରମନା ଓ ଭଗବତ୍ ପ୍ରାଣ ବ୍ୟକ୍ତି । ଶ୍ରୀ ଶ୍ରୀ ଦଧିବାମନ ମହାପ୍ରଭୁଙ୍କଠାରେ ତାଙ୍କର ଚିତ୍ତ ଥିଲା ଏକାନ୍ତ ଧ୍ୟାନମଗ୍ନ । ହରିକଥା ଶ୍ରବଣରେ ତାଙ୍କର ଅଶ୍ରୁପାତ ହେଉଥିଲା ବୋଲି ଶୁଣିବାକୁ ମିଳେ । ଅର୍ଡା ଦୁର୍ଗା ଦଧିବାମନ ମନ୍ଦିରରେ ଅନୁଷ୍ଠିତ ହେଉଥିବା ଭାଗବତ ସପ୍ତାହ ପାରାୟଣ ଓ ଗୀତାପାଠ କାର୍ଯ୍ୟକ୍ରମରେ ସେ ପ୍ରତିବର୍ଷ ଯୋଗଦାନ କରୁଥିଲେ । ନିଜେ ବ୍ରାହ୍ମଣ ଥାଇ ଅନ୍ୟ ବ୍ରାହ୍ମଣମାନଙ୍କୁ ଭୋଜନ ଦେବାରେ ତାଙ୍କର ପ୍ରାଣ ସର୍ବଦା ପ୍ରଫୁଲ୍ଲିତ ଥିଲା । ତାଙ୍କର ଧର୍ମପ୍ରାଣା ପତ୍ନୀ ମଧ୍ୟ ସର୍ବଦା ତାଙ୍କୁ ଅନୁସରଣ କରୁଥିଲେ । ସେହିପରି ମନ୍ଦିରର ସୁରକ୍ଷା ଓ

ତାହାର ଉପଯୁକ୍ତ ରକ୍ଷଣା-ବେକ୍ଷଣ ସମ୍ବନ୍ଧରେ ସେ ସର୍ବଦା ଚେଷ୍ଟିତ ଥିଲେ । ଏହି ବଂଶର ଶ୍ରୀ ଦାଶରଥୀ ପାଣିଗ୍ରାହୀ (ସ୍ୱର୍ଗୀୟ ନରସିଂହ ପାଣିଗ୍ରାହୀଙ୍କ ପୁତ୍ର)ଙ୍କର ପ୍ରଥମ ପୁତ୍ର ସନ୍ତାନ ଜାତ ହେବାରୁ ସେହି ନବୀନ ଶିଶୁପୁତ୍ରର ନାମକରଣ ଓ ଅନ୍ନପ୍ରାସନ୍ନୋତ୍ସବ ଉପଲକ୍ଷ୍ୟରେ ୧୯୫୬ ମସିହା, କୁମାର ପୂର୍ଣ୍ଣିମା ଦିନ ଦୁର୍ଗାଦଧିବାମନ ମନ୍ଦିରଠାରେ ଗୋଟିଏ ଯଜ୍ଞ ଅନୁଷ୍ଠିତ ହୋଇଥିଲା । ଆଖପାଖ ଅଞ୍ଚଳର ବହୁ ବ୍ରାହ୍ମଣ ଏହି ଯଜ୍ଞରେ ଯୋଗଦାନ କରିଥିଲେ ଓ ଗୋଟିଏ ବଡ଼ ଧରଣର ଭୋଜି ଅନୁଷ୍ଠିତ ହୋଇଥିଲା ।

ବର୍ତମାନ ମଧ୍ୟ ମାଆ ଦୁର୍ଗା ଓ ଦଧିବାମନ ମହାପ୍ରଭୁଙ୍କ ପୂଜାର୍ଚ୍ଚନା ସହିତ ଗୀତାପାଠ କରିବାର ବିଧିବିଧାନ ରହିଛି । ଅର୍ଡ଼ା ମନ୍ଦିରରେ ଭାଗବତ ସପ୍ତାହ ଓ ଗୀତାପାଠ କରିବାର କାର୍ଯ୍ୟକ୍ରମକୁ ସୁଚାରୁ ରୂପେ ସମ୍ପାଦନା କରିବାର ଦାୟିତ୍ୱରେ ଅଛନ୍ତି ଶ୍ରୀ ପୁରନ୍ଦର ପାଣିଗ୍ରାହୀ (ଶରଧାପାଲି), ଶ୍ରୀ ନାରାୟଣ ପାଣିଗ୍ରାହୀ (ଅର୍ଡ଼ା), ଶ୍ରୀ ରମଣୀରଞ୍ଜନ ମାଝୀ (ଅର୍ଡା), ଶ୍ରୀ ଗୌରଚନ୍ଦ୍ର ପାଣିଗ୍ରାହୀ (ହଲ୍‌ଦୀ), ଶ୍ରୀ ବିନୋଦ କୁମାର ପଣ୍ଡା (ଛତାବର) ଏବଂ ଅର୍ଡା ତଥା ଆଖପାଖ ଗ୍ରାମାଞ୍ଚଳର ସହକର୍ମୀବୃନ୍ଦ । ଏହି ସାପ୍ତାହିକ ଗୀତାପାଠ କାର୍ଯ୍ୟକ୍ରମରେ ଯୋଗ ଦେବାପାଇଁ ଆଖପାଖ ଅଞ୍ଚଳର ଭକ୍ତ ଓ ଶ୍ରଦ୍ଧାଳୁମାନେ ଆସିଥାନ୍ତି । ଏହାକୁ "ସପ୍ତାହ ପାରାୟଣ" କୁହାଯାଇଥାଏ । ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଗୀତା ଓ ଭାଗବତ ପାଠ ଶ୍ରବଣ ସହିତ ମହାପ୍ରଭୁଙ୍କ ଭୋଗଖାଇ ଭକ୍ତଗଣ ହର୍ଷ ମନରେ ନିଜ ନିଜ ଘରକୁ ବାହୁଡ଼ି ଯାଇ ଥାଆନ୍ତି ।

ମାଆ ଦୁର୍ଗା ହେଉଛନ୍ତି ସମଗ୍ର ବିଶ୍ୱର ଜନନୀ ଓ କଲ୍ୟାଣୀ । ସେ ହେଉଛନ୍ତି ଆଦିଶକ୍ତି । ସେ ଭକ୍ତମାନଙ୍କର ମନୋକାମନା ଶୀଘ୍ର ପୂରଣ କରନ୍ତି । ତାଙ୍କର ମହିମା ଅପାର । ସେ ପୁଣି ସକଳ ଶକ୍ତିର ଆଧାର, ଜଗତର ଜନନୀ, ସେ ଭକ୍ତମାନଙ୍କର ଦୁର୍ଗତି- ନାଶିନୀ । ସେ ଭକ୍ତଜନଙ୍କୁ ଦୁର୍ଗମରୁ ରକ୍ଷା କରନ୍ତି ବୋଲି ତାଙ୍କୁ 'ଦୁର୍ଗା' କୁହାଯାଇଛି । ଆହୁରି ମଧ 'ଦୁର୍ଗମ' (ଦୁର୍ଗ) ନାମକ ଅସୁରକୁ ବଧ କରିଥିବାରୁ ସେ ଦୁର୍ଗା ନାମରେ

ପରିଚିତା ହୋଇଛନ୍ତି । ସମଗ୍ର ଭାରତବର୍ଷରେ ମାଆ ଦୁର୍ଗାଙ୍କ ପୂଜାପାଠ ହେଉଥିଲେ ମଧ୍ୟ ଆଶ୍ୱିନ ମାସ ଶୁକ୍ଳପକ୍ଷ ଓ ଚୈତ୍ର ଶୁକ୍ଳପକ୍ଷରେ ବିଧିବିଧାନ ଅନୁସାରେ ତାଙ୍କର ନବରାତ୍ର ପୂଜା ଅନୁଷ୍ଠିତ ହୋଇଥାଏ । ମା' ଦୁର୍ଗା ଶରତଋତୁରେ ପୂଜିତା ହେବାରୁ ସେ 'ଶାରଦୀୟ ଦୁର୍ଗା' ଓ ବସନ୍ତଋତୁରେ ପୂଜା ପାଉଥିବାରୁ 'ବାସନ୍ତୀ ଦୁର୍ଗା' ଏପରି ଦୁଇଟି ନାମରେ ସମ୍ବୋଧନ କରାଯାଇଥାଏ । ଏହି କିଛି ବର୍ଷ ହେଲା ଡାକ୍ତରାଣୀ ଓ ବର୍ତ୍ତମାନର ବିଧାୟିକା ରାସେଶ୍ୱରୀ ପାଣିଗ୍ରାହୀଙ୍କ ଅଭିନବ ସଦୁଦ୍ୟମରେ ଅର୍ତ୍ତା ମନ୍ଦିରରେ "ବାସନ୍ତୀ ଦୁର୍ଗାପୂଜା" ଅନୁଷ୍ଠିତ ହୋଇଆସୁଛି । ଏହି ଦୁର୍ଗାପୂଜାରେ ଜଗତ୍‌ଜନନୀ ମା' ଦୁର୍ଗାଙ୍କ ପୂଜାର୍ଚ୍ଚନା ସହିତ ହୋମଯଜ୍ଞ – ଗୀତାପାଠ କାର୍ଯ୍ୟକ୍ରମ ଚଳି ଆସୁଛି । ଏହି ମନ୍ଦିର ପାଇଁ ଡାକ୍ତରାଣୀ ରାସେଶ୍ୱରୀ ପାଣିଗ୍ରାହୀଙ୍କ ଆର୍ଥିକଦାନ ମଧ୍ୟ କିଛି କମ୍ ନୁହେଁ । ସଂସ୍କୃତ "ଅମରକୋଷଃ" ଅଭିଧାନକାର କବି ଅମରସିଂ ମା ଦୁର୍ଗାଙ୍କୁ ସତରଗୋଟି ନାମରେ ବର୍ଣ୍ଣନା କରି କହିଛନ୍ତି :

"ଉମା କାତ୍ୟାୟିନୀ ଗୌରୀ କାଳୀ ହୈମବତୀଶ୍ୱରା
ଶିବା ଭବାନୀ ରୁଦ୍ରାଣୀ ଶର୍ବାଣୀ ସର୍ବମଙ୍ଗଳା
ଅପର୍ଣ୍ଣା ପାର୍ବତୀ ଦୁର୍ଗା ମୃଡ଼ାନୀ ଚଣ୍ଡିକାମ୍ବିକା ।।"

(ଅମର କୋଷଃ–ପ୍ରଥମକାଣ୍ଡ ସ୍ୱର୍ଗବର୍ଗ)

(୧) ଉମା, (୨) କାତ୍ୟାୟିନୀ, (୩) ଗୌରୀ, (୪) କାଳୀ, (୫) ହୈମବତୀ, (୬) ଈଶ୍ୱରୀ, (୭) ଶିବା, (୮) ଭବାନୀ, (୯) ରୁଦ୍ରାଣୀ, (୧୦) ଶର୍ବାଣୀ, (୧୧) ସର୍ବ-ମଙ୍ଗଳା, (୧୨) ଅପର୍ଣ୍ଣା, (୧୩) ପାର୍ବତୀ, (୧୪) ଦୁର୍ଗା, (୧୫) ମୃଡ଼ାନୀ, (୧୬) ଚଣ୍ଡିକା ଏବଂ (୧୭) ଅମ୍ବିକା । ଶେଷରେ ପାଠକ ପାଠିକା ଓ ଭକ୍ତବୃନ୍ଦ ଆସନ୍ତୁ ଭକ୍ତକବି

—

## ନମୋ ଦୁର୍ଗା କାତ୍ୟାୟିନୀ

(ରାଗ– ଗଡ଼ମାଳିଆ)

ନମୋ ଦୁର୍ଗା କାତ୍ୟାୟିନୀ,
ଦୁର୍ଗତିନାଶିନୀ ସିଂହବାହିନୀ ଗୋ
ନମୋ ମହିଷାସୁର ମର୍ଦ୍ଦିନୀ– ଜନନୀ ଗୋ ! (୧)

ନମସ୍ତେ ମା ଉଗ୍ରତାରା,
କୃପାବହି ନାଶ ଅବନୀ ଭାରା ଗୋ
ଶାନ୍ତି ବିରାଜୁ ଜଗତ ସାରା– ଜନନୀ ଗୋ ! (୨)

ନମସ୍ତେ ମା ନାରସିଂହୀ,
ନରନାରୀ ପ୍ରତି କରୁଣା ବହି ଗୋ
ସର୍ବ ସଂକଟରୁ କର ତ୍ରାହି– ଜନନୀ ଗୋ ! (୩)

ନମୋ ନମୋ ମା ମଙ୍ଗଳା,
ତୋର ଗଳେ ଶୋହେ ମନ୍ଦାର ମାଳା ଗୋ
ବିଶ୍ୱ ମଙ୍ଗଳ କର ବିମଳା– ଜନନୀ ଗୋ ! (୪)

ନମସ୍ତେ ମା ଜ୍ୱାଳାମୁଖୀ,
ଜଗତଜନଙ୍କୁ ନକର ଦୁଃଖି ଗୋ
ସଦା ସରବଦା କର ସୁଖୀ– ଜନନୀ ଗୋ ! (୫)

ବନଦୁର୍ଗା ନମୋଽସ୍ତୁତେ,
ତୋର ଅବତାର ଜଗତ ହିତେ ଗୋ
ସୁଖେ ରହନ୍ତୁ ବିଶ୍ୱେ ସମସ୍ତେ– ଜନନୀ ଗୋ ! (୬)

ନମୋ ନମୋ ମା ବାରାହୀ,
କୃପା ନୟନରେ ସରବେ ଚାହିଁ ଗୋ
ବିଶ୍ୱ କଲ୍ୟାଣ କର ମା ତୁହିଁ– ଜନନୀ ଗୋ ! (୭)

ନମସ୍ତେ ମା ଛିନ୍ନମସ୍ତା,
ନମୋ ମାହେଶ୍ୱରୀ ତ୍ରିଶୂଳ ହସ୍ତା ଗୋ
ଦୁଷ୍ଟ ସଂହାରିଣୀ ଲୋକମାତା– ଜନନୀ ଗୋ ! (୮)

ନମୋ ମାତଙ୍ଗୀ କଲ୍ୟାଣୀ,
ସୌଭାଗ୍ୟ ଦାୟିନୀ ଦୁଷ୍ଟ ନାଶିନୀ ଗୋ
ନମୋ ନମୋ ତ୍ରିତାପ ହାରିଣୀ– ଜନନୀ ଗୋ ! (୯)

ରାମଚଣ୍ଡୀ ନମୋଽସ୍ତୁତେ,
ଶିବା, ଧାତ୍ରୀ,ସ୍ୱାହା, ସ୍ୱଧା ନମସ୍ତେ ଗୋ
ଚଣ୍ଡି ଚାମୁଣ୍ଡା ତୁହିଁ ଜଗତେ– ଜନନୀ ଗୋ ! (୧୦)

ନମୋ କାଳୀ ଭଦ୍ରକାଳୀ,
ତୋହର ଶ୍ରୀପଦେ ଶରଣ ଗଲି ଗୋ
ବିଶ୍ୱଜନେ ରଖ ତୁହିଁ ପାଳି– ଜନନୀ ଗୋ ! (୧୧)

(ଶ୍ରୀ ଦୁର୍ଗା-ଦଧିବାମନ ଜଣାଣ– ୧୯୯୧, ପୃ.୨୯)

(ସମାପ୍ତ)

